ଧନାଇ ଦାସଙ୍କ ବିରଚିତ

# ଗୋପୀଭାଷା ।

ଶ୍ରୀ ମାଧବଚନ୍ଦ୍ର [illegible]ଙ୍କ ଦ୍ୱାରା

ଊନତ୍ରିଂଶବାର ପ୍ରକାଶିତ ।

କଟକ, ଅରୁଣୋଦୟ ପ୍ରେସରେ ମୁଦ୍ରିତ ।



ପ୍ରାପ୍ତିସ୍ଥାନ —
ଅରୁଣୋଦୟ-ପୁସ୍ତକାଳୟ
ବାଲୁବଜାର୍ - କଟକ ।
ପୋ: ଚାନ୍ଦନୀଚୌକ ।

ମୂଲ୍ୟ ୦ ୯ (୧୯୩୩) [illegible]

# ଗୋପୀଭାଷା ।

## ପ୍ରଥମ ଛାନ୍ଦ ।

କୃଷ୍ଣ କଥା ଭଲ ଗୋପୀ ସକଳ । ଶୁଣି ଅକ୍ରୁରଙ୍କ ହୃଅନ୍ତ ବିକଳ ॥
କାହୁଁ ଦାରୁଣ ଅକ୍ରୂର ଅଇଲା । କଂସ ଆଜ୍ଞା ବୋଲି ଗୋପେ କହିଲା ॥
କୃଷ୍ଣ ଆସିବେ ବୋଲି ଭଣ୍ଡିଗଲେ । କପଟ ଛନ୍ଦନ୍ତୁ ତାହା ଜାଣିଥିଲେ ॥
କଂସ ଯାହା କରୁ ପଛେ କରନ୍ତା । ଗୋପପୁରଯାକ ସବୁ ମାରନ୍ତା ॥
ତହୁଁ ମଲେହେଁ ହୁଅନ୍ତା କାରଣ । ଯାହା ଉପେକ୍ଷି ଗଲେ ନାରାୟଣ ॥
ଏକଗୋପୀଏ ବୋଇଲା ଥାଇଣ । ଅମ୍ଭେ ବେଳକହୁଁ ହୁଡ଼ିଗଲୁ ପୁଣ ॥
ଯେବେ ଅକ୍ରୂର ବାହୁଡ଼ ଯାଆନ୍ତା । କୃଷ୍ଣ ଗୋପପୁରେ ରହି ଥାଆନ୍ତ ॥
ଯାଇଁ କହନ୍ତା ଅକ୍ରୂର ରାଜାକୁ । କଂସ ଡ଼ରେ କି ଅସନ୍ତା ଗୋପକୁ ॥
ସେକି ଶୁଣିଣ ନାହିଁ କର୍ଣ୍ଣଧେନ । ଯେତେ ଯେତେକ କଲେ ଭାଇବେନ
ଇନ୍ଦ୍ର ସପତଦିନ ବୃଷ୍ଟି କଲା । ବଜ୍ରାଘାତେ ପଥର ବରଷିଲା ॥
ଛତ୍ର ଆକାରେ ଗିରିବର ଧରି । ଗୋପ ସମ୍ପଦ ରଖିଲେ ମୁରାରି ॥
ଇନ୍ଦ୍ର ହାରିଣ ଶରଣ ପଶିଲା । ଗୋପେ ଗୋବିନ୍ଦ ନାମ ଦେଇଗଲା ॥
କଂସ କି ଶୁଣି ନାହିଁ ସେହି କଥା । ସେ କି ଇନ୍ଦ୍ରହୁଁ ବଡ ସାମରଥା ॥
କେତେ କେତେ ବିପତ୍ତି ନ ପଡ଼ିଲା । କୃଷ୍ଣ ଥିଲାକୁ କିଛି ନ ଲାଗିଲା ॥
ଏବେ କେ ଅବା ଆମ୍ଭଙ୍କୁ ରଖିବ । ଆମ୍ଭ ବିରହ ଦୁଃଖ ଉପେକ୍ଷିବ ॥
ଏତେବୋଲିଣହେଲେ ସର୍ବେ ଦୁଃଖୀ । ଅନ୍ୟ ଗୋପୀଏବୋଲେ ଶୁଣସଖି
ସେ ଗୋବିନ୍ଦ ଦାରୁଣ ଅଟଇ କହ୍ନାଇ । ଏଡ଼େ ନିର୍ଦ୍ଦୟ ବୋଲି ଜାଣୁ ନାହିଁ
ଯାହା ଘରେ ଯେଉଁ ଦ୍ରବ୍ୟ ଅପୂର୍ବ । ତାକୁ ଲୁଚାଇ ଥୋଇଥାଉଁ ସର୍ବ ॥
ଅମ୍ଭେ ପତି ତନୟ ଗୋ ନ ଜାଣୁ । ଗୁରୁ ଗଉରବ ଲାଜ ନ ମଣୁ ॥
ଅମ୍ଭ ପତି ତନୟ ସବୁ ସେହି । ତାଙ୍କୁ ନ ଦେଖି ଯାଉଅଛି ଦେହି ॥

ତାର ମତ୍ତସାରଙ୍ଗ ତୁଲ୍ୟ ଗତ । ଦେଖି ଦେହ ଧରେ କେଉଁ ଯୁବତ ॥
ସେ ଗୋ ବନରୁ ଆସୁଥାଇ ଚାଲି । ଶିରେ ବରହିପୁଚ୍ଛ ଶୋହେ ଝଲି ॥
ନାସେ ବର୍ତ୍ତୁଳ ମୁକୁତା ଲୁଳଇ । କର୍ଣ୍ଣେ କୁଣ୍ଡଳ ବେନି ଢଗ୍ଗଳଇ ॥
ଗୋରଚନାଚିତା ଶୋହେ କପାଳେ । ତହିଁ ଉପରେ ଗୁଞ୍ଜାଗୁଞ୍ଜମାଳେ ॥
ଉରେ ଶାର୍ଦ୍ଦୂଳ ନଖ କଣ୍ଠିମାଳ । ଅଙ୍ଗେ ପଡ଼ିଣ ଥାଇ ଗୋରୁଧୂଳ ॥
ହସ୍ତେ ମୁରଲୀ ଗୋଟି ଥାଇ ଘେନି । ଇଚ୍ଛା ହୋଇଲେ କରୁଥାଇ ଧ୍ୱନି
କରେ ବଳୟ ବାହୁଟି କଙ୍କଣ । କଟିତଟେ ଶୋହେ ପୀତ ବସନ ॥
କଟିସୂତ୍ର ମେଖଳା ଓଢ଼ିଆଣି । ଚାରୁଚରଣେ ନୂପୁର ବାଜେଣି ॥
ରତ୍ନକଠାଉ ଶୋହେ ପଦ୍ମପାଦେ । ଦାସ ଦନାଇ ସେବା ସେହିଠାବେ ॥



## ଦ୍ୱିତୀୟ ଛାନ୍ଦ ।

ଖେଳ ଅସୁଥାନ୍ତି ନାନାରଙ୍ଗେଣ । ଗୋପପୁତ୍ର ବେଢ଼ିଥାନ୍ତି ସଙ୍ଗେଣ ॥
ନୀଳମଣିକି ଘେରି ହେମମାଳି । ତହିଁମଧ୍ୟେ ସୁନ୍ଦର ବନମାଳୀ ॥
ତାହା ଦେଖି ହୋଇଥାଉଁ ଉପସତ । ମତ୍ତ ଗରବେ ହେଉଥାଉଁ ମତ୍ତ ॥
ତାଙ୍କୁ ପାଇବା ଆମ୍ଭେ ଅଉ କାହିଁ । ଭଲ ମରିବାସିନା ଦେହ ଦେଇ ॥
ଆଉ ଲୋଡ଼ିଲେ କାହିଁଛି ସେ କଥା । ପିଠି ଘେନଇ କାହିଁ ପେଟ ବ୍ୟଥା
ଏକ ଗୋପୀଏ ବୋଇଲା ସଙ୍ଗାତ । ମୋତେଦନେକଲେ କୃଷ୍ଣ ଯେମନ୍ତ
କହିବାକୁ ବଡ଼ ଲାଜ ମାଡ଼ଇ । ତାର କଥା ମନରୁ ନ ଛାଡ଼ଇ ॥
ଦିନେ ଦେଖି ପଥେ ଅସିବାବେଳେ । ରହ ବୋଲି ଧଇଲା ଯାଉଁବେଳେ
ମୁହିଁ ଭୂମିରେ ପଡ଼ିଲଇଁ ଶୋଇ । ମୋତେକୋଳକରି ନେଲେ ମାଧୋଇ
ନେଇ ନିକୁଞ୍ଜ ବନର ଭିତର । ଯେତେ ସୁରତ କଲେ ଅଗୋଚର ॥
କାହୁଁ ଶିଖିଲା କାହ୍ନୁ ଏତେ ରଙ୍ଗ । ମୋର ଜ୍ଞାନ ହରିନେଲା ଶ୍ରୀରଙ୍ଗ ॥
ସେହିଦିନୁ କାହ୍ନୁ ମୋର ଜୀବନ । ବେନୁଁ ଅସିବାକୁ ନୋହେ ମୋ ମନ ॥
ଏକ ଗୋପୀଏ ବୋଇଲା ମିତଣି । ଦିନେ ଗଲି ମୁଁ ଘାଟେନୀର ଆଣି ॥
ମୋର ମନ୍ଦିରେ ପଶିଲେ ମାଧୋଇ । ଘରେ ଦେଖିଲେ ନାହିଁ ଦୁଧ ଦହି

ଶିକା ଉପରେ ନଉତ ଦେଖିଲେ । ହସ୍ତ ନ ପାଇଲାକୁ ବୁଦ୍ଧି କଲେ ॥
ପିଢ଼ା ଉପରେ ପିଢ଼ାମାନ ଥୋଇ । ତଥିଉପରେ ଉଠିଲେ ମାଧୋଇ ॥
ଯଷ୍ଟି ଘେନ ଫୋଡ଼ିଲେ ଦଧିଭଣ୍ଡ । ଜଳାସଳଖେ ପାତଛନ୍ତି ତୁଣ୍ଡ ॥
ମୁଁ ଗୋ ଏମନ୍ତ ସମୟେ ଅଇଲି । ଖାର ଭଣ୍ଡ ତଳେ ଥୋଇ ଗୃହିଁଲି ॥
ଦୁଧ ପିଉଛି ହାଣ୍ଡି କଣା କରି । ଯାଇଁ ବସିଲି ଦୁଆର ଆବୋରି ॥
ଆଜ ଜାଣିବ ଯିବୁ କେଉଁ ବାଟ । ମିଛପ୍ରାୟେ ମଣେ ନନ୍ଦସୁବଟ ॥
ନିତ ପ୍ରତି ମୋ ଘରୁ ସବ ଖାଉ । ଆଜ ଜାଣିବା ତୋତେ କେନ୍ତେ ନେଉ
ମୋତେ ତରକ ବାକ୍ୟେ ଅନାଇଲା । ଦୁଧ ଗଣ୍ଡି ଷଣ୍ଢେ ରନେ ମାଇଲା ॥
ବେନହସ୍ତେ ବୁଜିଲି ବେନଚକ୍ଷୁ । ପେଲି ପକାଇ ଗଲା ନନ୍ଦବଳା ॥
ଏକ ଗୋପୀଏ ବୋଇଲା ମିତଣି । ସେ ଗୋ ବଡ ମାୟାବୀ ଚକ୍ରପାଣି ॥
ଦିନେ ଗୋଗୋଷ୍ଠେ ରହିଲା ଗୁଆଳ । ଚୈର ରୂପ ଧଇଲା ନନ୍ଦବାଳ ॥
ନିଶାକାଳେ ମୋ ପୁରକୁ ଅଇଲା । ଦଧି ଦୁଧ ସର ସବୁ ଖାଇଲା ॥
ଶାଶୁ ପଣତ ଧରି ଓଟାରଇ । ବହୁ ଚୈର ବୋଲି ଡ଼କା ପାରଇ ॥
ଦୀପ ବନ୍ଦନ କରଣ ଧର ଗୋ । ଅମ୍ଭଘରେ ପଶଅଛି ଚୈର ଗୋ ॥
ଦୀପ ଲଗାଇ କୃଷ୍ଣଙ୍କୁ ଧଇଲୁଁ । ବାନ୍ଧି ଯଶୋଦା ଆଗରେ କହିଲୁଁ ॥
ବେଗେ ଘରୁ ଆସ ଗୋ ନନ୍ଦରାଣି । ଯାଇଁ ଦେଖ ତୋ ପୁଅର ବାନ୍ଧେଣି
କଂସ ନୃପଙ୍କ ମଲ୍ଲ କି ଶୁଣିଲୁ । ଛନ୍ଦ ତୋହର ଅଢ଼କୁ ଅଣିଲୁ ॥
ପୁଅ ଗୋପପୁରେ ଷଣ୍ଢ ହୋଇଲା । ନାନା ଅନ୍ୟାୟମାନ ପାରକଲା ॥
ଏବେଳ କହିଲେ ନ ଡରୁ । ଆଜ ଜାଣିବା କେହ୍ନେ ରକ୍ଷାକରୁ ॥
ତୋର ପୁଅପଣହିଁ ସରଯିବ । ଆମ୍ଭ ଘର ପଛେ ଗୋପେ ନୋହିବ ॥
କେତେ ତନୟ ଗୋପପୁରେ ନାହିଁ । ଏଡ଼େ ଉଚ୍ଛୁଳ ପୁଅ ଅଛି କାହିଁ ॥
ମୋର ପ୍ରବଳ ଶୁଣି ନନ୍ଦରାଣୀ । ଘର ଭିତରୁ ବାହାର ସେକ୍ଷଣି ॥
କୃଷ୍ଣ ଧରିଛନ୍ତି ତା ବାମକର । କାମପାଳହିଁ ଅଛନ୍ତି ସଙ୍ଗର ॥
ବେନଭାଇ ବେନପାଶେ ଅଛନ୍ତି । ଘର ଭିତରୁ ବାହାର ଯୁବତି ॥
କହ୍ନେ କି ତେଜ କାଢ଼ୁଛୁ ଗୁଆଳୀ । ତୋତେ କି କଲା ମୋର ବନମାଳୀ ॥

ମୋର ବାଳୁତ ପୁଅଲୋ କହ୍ନାଇ । ହସି ଖେଳନ୍ତେ ଚେତ ନ ଜାଣଇ ॥
ଆଜ ଘରୁ ଲୋ ନୋହୁଛି ବାହାର । କେଉଁବାଟେ ଲୋ ଗଲା ଚୋରପୁର
ମୋର ସହ୍ନବା ସତପ୍ରାୟେ ମଣୁ । ଦୋଷ ହଅ ଲୋ କେଉଁ ବଡ଼ପଣୁ ॥
ଦେଖି ତୁ ଶୁଣୁ ନ ଅସେ ବଚନ । ମୋତେ ନନ୍ଦଘଣ ପଦ ତେସନ ॥
ତହୁଁ ଲାଜେ ମୁଁ ବାହୁଡ଼ି ଅଇଲି । କୃଷ୍ଣ ବାନ୍ଧିବା ଠାବରେ ହୋଇଲି ॥
ମୋର ତନୟ ବନ୍ଧା ହୋଇଅଛି । ତାହା ଦେଖି ଗୋ ନ ସ୍ଫୁରିଲା କଛି ॥
ଫେଡ଼ ଦେଇ କାହାକୁ ନ କହିଲି । ଲାଜେ ମୋହସୁଖେ ଭୁଲ ହୋଇଲି
ସାନବେଳହୁଁ ମାୟା ଅଗୋଚର । ତେଣୁ ଅଟଇ ନାମ ମାୟାଧର ॥
ଏକ ଗୋପୀଏ ବୋଇଲା ବଗୃର । ତାର ସାନବେଳ କଥା ପଗୃର ॥
ହନେଯଶୋଦାକୋଳେଖେଳୁଥିଲା । ମୋତେଦେଖିମୋକୋଳକୁଅଇଲା
କାଖ କର ମୋ ଶରଧା ବଳାଇଲା । ମୋର କୁଚରେ ହସ୍ତ ପକାଇଲା ॥
ଗୃରହଗକୁ ଗୃହିଁ ଅନୁସର । ମୁଖେ ଚୁମ୍ବନ ଦେଲା ସ୍ଥିର କର ॥
ମୋର ଅଙ୍ଗେ ପୀଡ଼ିଲା ପଞ୍ଚଶର । ଦେହ ହୋଇଲା ସାତ୍ତ୍ୱିକ ବକାର ॥
ମୋତେ ଅନଙ୍ଗଜ୍ୱର କଲା ପୀଡ଼ା । ଝୋକାବେଳହୁଁ କାହ୍ନୁ ଘରବୁଡ଼ା ॥
ଏକ ଗୋପୀଏ ବୋଇଲା ସଙ୍ଗାତ । ମୋତେ ସବୁହୁଁ କଲେ ବପରୀତ ॥
ହନେ ଦେଖିଲି ଖେଳୁଛି ଦାଣ୍ଡର । ଧୂଳି ଝାଡ଼ି ମୁଁ ଧଇଲି କୋଳର ॥
ହଗମ୍ବର ସ୍ୱରୂପେ ବହେ ଝାଳ । ଲକ୍ଷକଣ୍ଠୀମଧ୍ୟେ ନଖଶାର୍ଦ୍ଦୂଳ ॥
ବେଣୀ ଲମ୍ବଇ ତେଲେ ଜର ଜର । ନୀଳମଣି ଅଙ୍ଗ ଧୂଳିଧୂସର ॥
କାଖକର ଘରକୁ ଘେନ ଗଲି । ଘରେ ଲବଣୀ ସର ଭୁଞ୍ଜାଇଲି ॥
ଭୁଞ୍ଜୁ ଭୁଞ୍ଜୁ ସେ ନଦ୍ରାଗଲେ ଯହୁଁ । ନେଇ ପଲଙ୍କେ ଶୁଆଇଲି ତହୁଁ ॥
ମୁଁ ଗୋ କୋଡ଼ରେ ଘେନଣ ଶୋଇଲି । ନଦ୍ରାଗଲେ ଛାଡ଼ଯିବ ବୋଇଲି
କୋଟି କନ୍ଦର୍ପ ମୂରତ ଧଇଲା । ବାଳ କୁମର ତରୁଣ ହୋଇଲା ॥
ମୁଁ ଗୋ ହୋଇଲି ତାହାର ଅଯୁକ୍ତ । ମୋର ଅଙ୍ଗରୁ ହରନେଲା ଚଉ ॥
ଚଉଷଠି ବନ୍ଧରେ ବପରୀତ । ଯାହା ଶୁଣିଲା ନାହିଁ କର୍ଣ୍ଣପଥ ॥
ତେତେ ପରବନ୍ଧ କେହ୍ନେ ଜାଣିବ । କାମଦେବହୁଁ ଜାଣି ନ ପାରିବ ॥

ଝୀଡ଼ା ସାର ମୁଁ ପିନ୍ଧିଲି ବସନ । ଟେକିଲି ଟେସନ୍ତ ବାଳପୁଅ ଡେସନ ॥
ଚିନ୍ତୁଥାଇ ମୁଁ ଘର ଦ୍ୱାରା ବସି । ଫେଡ଼ି କହିଲି ଏତେ କାଳେ ଆସି ॥
ଜଗନ୍ନାଥ ତାହାଙ୍କୁ ବନ୍ତ କଲେ । ପ୍ରଭୁପଣହିଁ ତାଙ୍କ ହସ୍ତେ ଦେଲେ ॥
ଏବେ ହୋଇଲେ ତହିଁ ପୁଂସସାର । ତାଙ୍କୁ ଯୁବତୀ ମିଳନ୍ତି ଅପାର ॥
ରଜା ମାର ପାଇଛି ବଡ଼ପଣ । ଆଉ ଅଛି କି ତାର ବ୍ରଜ ଗୁଣ ॥
ତୁମ୍ଭେ କିପାଇଁ ମନରେ ପଞ୍ଚବ । ତାଙ୍କୁ ନ ମିଳିଲେ ସିନା ଲୋଡ଼ିବ ॥
ଏବେ ବେଭରେ ଚତୁର ହୋଇଲା । ତହିଁ ଚତୁରନାରୀଙ୍କି ମୋହିଲା ॥
ଏକେ ନାଗର ଅଟଇ ସୁରଙ୍ଗ । ହୁକେ ପାଇଲା ନାଗରୀଙ୍କ ସଙ୍ଗ ॥
ତହିଁ ରସିକା ଯୁବତୀ ଅପାର । ରତି ଜାଣନ୍ତି ବିବିଧ ପ୍ରକାର ॥
ତାଙ୍କୁ ନାନା ରସରେ ରସାଇଲେ । ଗୋପପୁର କଥା ପାସୋରିଲେ ॥
ଅମ୍ଭେ ଯେତେ ହୋଇଲେ ଗଉଡ଼ୁଣୀ । ତାଙ୍କ ଭାବ ଜାଣିବା କାହୁଁ ପୁଣି ॥
ଯାକୁ ନାନା ରସପଣା ମିଳିବ । ସେ ଗୋ ଗୁଡ଼ପଣା କିସ କରିବ ॥
ଯାକୁ ମିଳିବ ଦିବ୍ୟ ଶାଳିଅନ୍ନ । ତାର ବଗଡ଼ାଭାତେ କାହିଁ ମନ ॥
ଯାକୁ ମିଳିବ ସୁବାସ ଚନ୍ଦନ । ତାର ନିମ୍ବକାଠରେ କାହିଁ ମନ ॥
ଯେହୁ ଗଙ୍ଗାରେ କରିବ ସ୍ନାହାନ । ତାର କୂପଜଳରେ କାହିଁ ମନ ॥
ଯେହୁ ପାଟପତନି ଗୋ ପିନ୍ଧିବ । ସେ ଗୋ ଶୁକଳବସ୍ତ୍ର କି କରିବ ॥
ଯାକୁ ମିଳିବ ପଲଙ୍କ ସୁପାତି । ତାର ଭୂମି ଶଯ୍ୟାରେ କାହିଁ ମତି ॥
ତାଙ୍କୁ ଅପୂର୍ବ କେଉଁ ଦ୍ରବ୍ୟ ଅବା । ଦାସ ଦନାଇ ସେହିଠାବେ ସେବା ॥



## ଚତୁର୍ଥ ଛାନ୍ଦ ।

ଏକ ଗୋପୀ ବୋଇଲା ଶୁଣ ସଖି । ଭଲ ମରିବା ସିନା ହୋଇ ଦୁଃଖୀ ॥
ସେ ଗୋ ପୁରୁଷ ଜାତି ଭୃଙ୍ଗମତି । ପୁଷ୍ପ ଚୁମ୍ବିବାଯାଏ ଭଣ୍ଡୁଥାନ୍ତି ॥
ପୁଷ୍ପ ଚୁମ୍ବିଲେ ନ ଦ୍ୟନ୍ତି ଉତ୍ତର । କୃଷ୍ଣ ସେହିରୂପେ ହେଲେ ଅନ୍ତର ॥
ଶଠ ପୁରୁଷମାନେ ସେହିମତ । କାର୍ଯ୍ୟ ପାଇବାଯାଏ ଭଣ୍ଡୁଥାନ୍ତି ॥
ଏକ ଗୋପୀ କଥା ଶୁଣି ଆରେକ । ଆଗସର କହିଲା କଥା ଏକ ॥

ସେ ଗୋ ସପତଣି କଥା ନ ଛାଡ଼ । ନଷ୍ଟେ ମରବା ଯେବେ ଅନୁଛାଡ଼ ॥
ଗୃହଆଡ଼େ ଶୁଭ୍ର ଅପକାରଣ । କୃଷ୍ଣ ଅଶେଷ ମଲେ ଗୋପଯୁବତୀ ॥
ସ୍ତ୍ରୀହତ୍ୟା ପାତକ କୃଷ୍ଣ ପାଉ । ତାର ପୁଣ୍ୟ ଯେତେକ କ୍ଷୟ ଯାଉ ॥
ଏତେବୋଲି ଗୋପୀ ତୁନ ହୋଇଲା । ଏକଗୋପୀଏ ଥାଇଣ ବୋଇଲା
ମୁଁ ଗୋ କଥାଏ କହିବି ପରାଣ । ତୁମ୍ଭେ କୃଷ୍ଣର କଥା ଗୋ ନ ଜାଣ ॥
କ୍ଷୀର ଦେବାକୁ ପୂତନା ଅଇଲା । ବାଳକୁମରକୁ କୋଳେ ଧଇଲା ॥
ଛଦ୍ମା କରି ଦେଉଛି କ୍ଷୀରପାନ । ଦୁଧ ସଙ୍ଗତେ ଶୋଷିଲା ପରାଣ ॥
ତାକୁ ସ୍ତ୍ରୀହତ୍ୟାହିଁ ନ ଲାଗିଲା । ଆଉ ସମସ୍ତେ ବୋଲେ ଭଲ କଲା ॥
ପୁଣି କରୁଛିଲା ଷଣ୍ଢ ଗୋଷ୍ଠାଏ । ଗୋରୁବଧ ଲାଗିଲା କେଉଁଠାଏ ॥
ଯାନ ବେଳହିଁ ମାୟା ଅଗୋଚର । ତାର ପାପ ପୁଣ୍ୟକୁ ନାହିଁ ଡର ॥
ଜାଉଁ ଜାଉଁ ସେ ଆମ୍ଭଙ୍କୁ ଲୁଚିଲା । ଆମ୍ଭେ ମଲେହେଁ ତାର କିସ ଗଲା ॥
ଏକ ଗୋପୀଏ ବୋଲେ ଆପସର । ବୁଦ୍ଧି ହରାଇ ମରୁଅଛୁଁ ଝୁରି ॥
ଆମ୍ଭେ ପୂର୍ବେ କରିଅଛୁଁ ପାତକ । ଗୋରୁ ବ୍ରାହ୍ମଣ ମାରିଛୁଁ ଅନେକ ॥
କାର ଭର୍ତ୍ତା ଛଡ଼ାଇ ଦୂର କଲୁ । କ୍ଷେଷୀ ଭୁଞ୍ଜିଲା ଅନ୍ନ ଫିଙ୍ଗିଦେଲୁ ॥
ଆମ୍ଭେ ବଡ଼ ଅଭାଗୀ ଗୋପନାରୀ । ତେଣୁ ଉପେକ୍ଷି ଗଲେ ନରହରି ॥
ସଖି ଅଛନ୍ତିକି ତୁମ୍ଭ ମନର । ଛନେ ଯାହା କଲେ କୁଞ୍ଜବନର ॥
ନିଶାକାଳେ ମୁରଲୀ ବଜାଇଲେ । ସବୁ ଗୋପୀଙ୍କି ବାଇ କରାଇଲେ ॥
ଯେତେ ରଙ୍ଗ କଲେ କୁଞ୍ଜବନର । ବୃନ୍ଦାବତୀ ଯେନ ହେଲେ ଅନ୍ତର ॥
ପାଦପଦ୍ମ ଶିରି ଭେଟ ପାଇଲୁଁ । ତାଙ୍କ ଅଧରୁ ଅମୃତ ଖାଇଲୁଁ ॥
ଛାଡ଼ ନ ଯାଇ ମନରୁ ସେ କଥା । କୁନ୍ତ ମାଇଲେ ଯେସନେ ଥାଇ ବ୍ୟଥା ।
ଏକ ଗୋପୀଏ ବୋଇଲା ନ ଭଲ । ଆମ୍ଭ ହୃଦୟ ଦୁଃଖ ଅସମ୍ଭାଳ ॥
ମନେ ବିଚାରି ଗୋପୀଏ ବୋଇଲା । ସେ ଗୋ ନ ପୋଷେ ଆମ୍ଭଙ୍କୁ ମାଇଲା
ଯାହା ସଙ୍ଗେ କରେ ଯେହ୍ନ ପୀରତି । ନଷ୍ଟେ କାଳ ହୁଅଇ ସେହ୍ନମତି ॥
ସେ ଗୋ ମରିଥିଲେ ଭଲ ହୁଅନ୍ତା । ଏତେ ଦୁଃଖ କିପାଁ ଦେହ ସହନ୍ତା ॥
ଗଛ ଭାଜିଲା ମାଡ ନ ପଡ଼ିଲା । ପୋଡ଼ା ଶଗଡ଼ହିଁ ମାଡ଼ ନ ଗଲା ॥

ଭୁଂଉ ଉଡ଼ାଇ ନେଇ ନ ଗିଳିଲ । ଅଜଗର ପେଟରୁ ନିକାଳିଲ ॥
କାଳି ଦଂଶିଲେ ଯାଇଥାନ୍ତା ସର । ଅମ୍ଭେ ମରନ୍ତୁ କପାଁ ଏତେ ଝୁର ॥
ଏକ ଗୋପୀଏ ବୋଇଲା ତୁରତ । ତାକୁ କପାଁ ଘାଲିଦିଅ ସଙ୍ଗାତ ॥
କେତେଠାରୁ ରଖି ନାହୁଁ ଆମ୍ଭନ୍ତ । ତାର ଅରିଷ୍ଟ ପଡ଼ୁ ଅମ୍ଭ ମାଥ ॥
ଶୁଣ ପାପୋର ନୋହିବ ଯେତେକ । ଗୋପପୁରେ କରଅଛି ତେତେକ
ସର୍ପ ଗିଳିଲା ପୁଅଙ୍କୁ ରଖିଲା । କେତେ କେତେ ସଙ୍କଟୁ ନ ତାରିଲା ॥
ଇନ୍ଦ୍ର ବବାଦୁଁ ରଖିଲା ଯେମନ୍ତ । କାହା ବଳେ କରନୋହେ ତେମନ୍ତ
ବନ ପୋଡ଼ିଲେ ସମସ୍ତେ ମରନ୍ତୁ । ନିଆଁ ଗିଳି ରଖିଲେ ସର୍ବଜନ୍ତୁ ॥
ନନ୍ଦ ଯମୁନାଜଳେ ବୁଡ଼ିମଲ । ମଲା ଜୀଆଇଁ ପୁଣି ଆଣିଦେଲା ॥
ଆଉ କରଛି ଯେତେ ଉପକାର । ଗୋପପୁରଯାକ ତାର କୋମ୍ବର ॥
ତାଙ୍କୁ କେମନ୍ତ କର ମୂର୍ଚ୍ଛିବା । ପୋଡ଼ ପୋଡ଼ୁଏ ଜୀବନ ଲେଛିବା ॥
ଅଗ୍ନି କୁଣ୍ଡାଇ ଭିତରେ ପଶିବା । ଡେଇଁ ଯମୁନା ଜଳରେ ଝଂପିବା ॥
ତାର ଉପରେ ପଛେ କଥା ଥାଉ । ପରମାନନ୍ଦ ଲଗି ଦେହ ଯାଉ ॥
ଫେଡ଼ି କହିଲ ସଖିଙ୍କେ ଉତ୍ତର । ଫାନ୍ଦେ ପଡ଼ିଛି ମୋତେ ପାଟକର ॥
ଏକ ଗୋପୀଏ ବୋଲେ ବୁଦ୍ଧିଏକ । ଲିହି କୃଷ୍ଣଙ୍କୁ ଶୁକଦେବା ଲେଖା ॥
ଅମ୍ଭେ ସତେଯେବେ ତାଙ୍କ ସେବକ । ଆପି ଭେଟହୋଇଯିବେବାରେକ
ଅମ୍ଭେ ଅଶାକରଅଛୁଁ ଅନେକ । ଯେହ୍ନେ ଗଗନ ଜାରଜୁ ଚାତକ ॥
ତୁମ୍ଭ ଅଧରୁ ଅମୃତ ପିଅଅ । ମରୁଅଛୁଁ ସର୍ବ ଗୋପୀ ଜୀଆଅ ॥
ତୁମ୍ଭ ଲାବଣ୍ୟ କନ୍ଦର୍ପ ମୂରତି । ବାରେ ଦେଖିଲେ ପାଇବୁଁ ମୁକତି ॥
ତୁମ୍ଭେ ଦୀନଜନ ଆଶା ବିଶ୍ରାମ । ଜୀବ ରଖିଛୁଁ ଧରି ତୁମ୍ଭ ନାମ ॥
ତୁମ୍ଭେ ବାରେ ନଇଲେ ନନ୍ଦବତ୍ସ । ନିଶ୍ଚେ ମଲୁଟି ଅମ୍ଭଙ୍କୁ ମୂରୁଛ ॥
ନାମ ବୋଲିଉ ଅଛ ଗୋପୀନାଥ । ଯେହ୍ନେ ବୋଲିବ ସାରବୁ ନହତ ॥
ଏବେ ମଥୁରାନାଥ ବୋଲାଇବ । ଅମ୍ଭ ନାମ ଧରି ଭାଳ ନୋହିବ ॥
ଏକ ଗୋପୀଏବୋଲେ ନୋହେ କଛି । ମୋତେ ଭଲ ଜଣ୍ଡିଏହିଦାଶୁଛି
ଗୋପପୁରଯାକ ଚୂଣ୍ଡ ହୋଇବା । କରେ କାଉଁର ଲଉଡ଼ି ଧରିବା ॥

ମଧୁପୁରକୁ ବୋଲ ଯିବା ଧାଇଁ । ଝାସି ପଶିବା କଣ୍ଠକେ ଝସାଇ ॥
ତାଙ୍କସନ୍ନିଧେ ହୋଇବା ପ୍ରବେଶ । ତାଙ୍କୁ ବୋଲିବା ଗୋପେ ବେଗେ ଆସ
ଯେବେ ନ ଛାଡ଼ିବେ ମଧୁପୁରବାସ । ଗୋଳ କରି ଆଣିବା ଶିଷ୍ୟପତ ॥
ସଖିକଲେ ଲୋକେ କେନ ବୋଲିବେ କି । ଗୋପୀନାଥଙ୍କୁ ଗୋପୀନ ନେବେ କି
ଏକ ଗୋପୀଏ ବୋଲେ ନୋହେ କିଛି । ମୋତେ ଏହି ଭଲବୁଦ୍ଧି ଦିଶୁଛି
ଜଗନ୍ନାଥ ଏମନ୍ତ କରିବେନି । ତାହା ଦେଖିବା ବେନିଚକ୍ଷୁ ଦେନି ॥
ଭଜ ଯିବନି ମଥୁରା ନଗର । କୃଷ୍ଣ ପୁଣି ଆସିବେ ଗୋପପୁର ॥
ଆମ୍ଭେ ରୁଷିବା କଥା ନ କହିବା । ତାଙ୍କ ଗୃହୁଁ କହିଲେ ନ ଶୁଣିବା ॥
ଗୋପୀ ଏମନ୍ତ ବୋଲିଣ ମଉନ । ତହୁଁ ଶୁଭିଲା କୋକିଳର ସ୍ୱନ ॥
ଗୃହୁଁ ବୋଲନ୍ତି ବରଜ ସୁନ୍ଦରୀ । ପିକ ନୋହୁ ଅମ୍ଭେ ତୋର ବଇରୀ ॥
ଆମ୍ଭେ କାମିନୀ ଅଟୁ ଗୋପନାରୀ । ଆମ୍ଭେ ମଲେ ଅର୍ଜିବୁ କେଉଁ ଶିରୀ ॥
ଏବେ ଚଳି ଯା ମଥୁରା ନଗର । କୃଷ୍ଣ ଅଗେ କର ଧ୍ୱନି ସୁସ୍ୱର ॥
ତାଙ୍କୁ କନ୍ଦର୍ପବାଧା ଲଗାଇବୁ । ଆମ୍ଭଠାରେ ତା ସ୍ନେହ ବଢ଼ାଇବୁ ॥
ଆଣି ପାରିଲେ ତୋତେ ସେବିଥିବୁଁ । ଖାଇବାକୁ ଖଣ୍ଡେରେ କ୍ଷୀର ଦେବୁଁ
ଶୁଣି ମଉନ ହୋଇଲା କୋକିଳ । ଚନ୍ଦ୍ର ଉଦୟ ଦେଖିଣ ବିକଳ ॥
ତାକୁ ଗୋପୀଏ କରନ୍ତି ଦଇନା । ତୋତେ ଦେଖିଲେ ହୃଦନ୍ତୁ ଏ ହାଣି ॥
ପୂର୍ବ ଗଳ୍ପକଥା ମନେ ପଡ଼ଇ । ଅମ୍ଭ ହାଡ଼ରୁ ମାଉଁସ ଝଡ଼ଇ ॥
ଆଉ ଏତେ ହୋଇ ଉଦେ ନୋହିବୁ । ଆମ୍ଭେ ମଲେ ତୁ କି ସୁଖ ପାଇବୁ
ମନେ ବିଗୃର ଗୋପୀଏ ବୋଇଲା କୃଷ୍ଣ ଗଲେ ଏଥୁଁ ଭଲ ହୋଇଲା
ଏଥି ଥିଲେ କି ଅନ୍ତା ମହାଖୁଡ଼ୁ । ତହିଁ ହୋଇଛି ସବୁର ଠାକୁର ॥
ସ୍ଥାନ ବିଶେଷେ ଦ୍ରବ୍ୟ ପୂଜା ପାଇ । ଯେଉଁସ୍ଥାନେ ଯେଉଁଦ୍ରବ୍ୟ ବିକାଇ
ଥିଲା ଶବରଣୀ ହାତେ ମାଣିକ । ତାହା ଚିହ୍ନି ଦେନିଗଲା ଗୁଣିକ ॥
ଯେତେହେଲେ ଶାମୁକୁଁ ବ ହାର ମୁକୁତା । କାଳେ ଭୋଗକରେ ତାହା ଦେବତା
ଗୁଞ୍ଜା ଦେଖୁ ଯୋଗ୍ୟ କ୍ଷୀଣ ହୋଇଲା । ଏକ ଗୋପୀଏ ଥାଇଣ ବୋଇଲା
ଯାହା ମହିମା ଦେବଙ୍କୁ ଦୁର୍ଲଭ । କାହ୍ନୁ ପ୍ରାପତ ଆମ୍ଭଙ୍କୁ ସୁଲଭ ॥

ଖର ଉଣ୍ଡାସିବାପାଇଁ ଜନମ । ଅନବେଳେ କର ନୋହେ ସମାନ ॥
ଭାଗ୍ୟ ଯେତେ ଧନ ଥିଲା ଆମ୍ଭର । କୃଷ୍ଣ ଯେନା ଖେଳୁଥିଲୁଁ ସଙ୍ଗର ॥
ଜଗଦାତ୍ମାରେ ଜଗତ ପୂରିତ । କୃଷ୍ଣ ଜାଣିଲେ ଗୋପୀଙ୍କ ଆରତ ॥
ବେଗେ ଘଇଲେ ଉଦ୍ଧବଙ୍କୁ ପାଶ । ତୁମ୍ଭେ ଗୋପପୁରକୁ ଯାଇ ଆସ ॥
ତୁ ଯେ ଭକତ ଆମ୍ଭର ବାନ୍ଧବ । ତେଣୁ ବରଗୁଅଛୁ ଭକ୍ତଠାବ ॥
ମୋତେ ନ ଦେଖିଣ ଗୋପୀଗୋପାଳ । ନିରନ୍ତରେ ହେଉଛନ୍ତି ବିକଳ ॥
ମୋତେ ନ ଲେଡ଼ନ୍ତି ଗୋପୀ ଯେମନ୍ତ । ତାଙ୍କୁ ବୁଝାଇ କହିବ ତେମନ୍ତ
ଆଜ୍ଞା ପ୍ରମାଣେ ଉଦ୍ଧବ ଚଳଇ । ଯାଇଁ ଗୋପନଗରେ ଯେ ମିଳଇ ॥
ପାଶେ ବସାଇଣ ଗୋପୀ ଗୋପାଳ । ତାଙ୍କୁ ବାରତା ପୁଛନ୍ତି ସକଳ ॥
କୃଷ୍ଣ କହିବା କଥାମାନ କହି । ବେଗେ ଉଦ୍ଧବ ବାହୁଡ଼ି ଆସଇ ॥
ଗୋପୀ ବିରହବୋଲି ସୁଧାରସ । ଶୁଣି ସୁଜନ କଲ୍ମଷ ବିନାଶ ॥
କୃଷ୍ଣ ପଦ୍ମପାଦରେ ଦେଇ ଚିତ୍ତ । ଦାସ ଦିନାଇ ସେବେ ଗୋପୀନାଥ ॥




କଟକ, ଅରୁଣୋଦୟ ପ୍ରେସରେ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ